# କଥା ଘଡ଼ିଏକୁ ଭାବ ଗାଡ଼ିଏ












ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ, ଭୁବନେଶ୍ୱର

Digitized by srujanika@gmail.com

# କଥା ଧାଡ଼ିଏକୁ ଭାବ ଗାଡ଼ିଏ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ, ୟୁନିଟ୍ - ୫,
ଭୁବନେଶ୍ୱର-୭୫୧ ୦୦୧

Digitized by srujanika@gmail.com

# କଥା ଧାଡ଼ିଏକୁ ଭାବ ଗାଡ଼ିଏ

(ଢଗ ଢମାଳି ସଂକଳନ)

*ସଂକଳକ :*

**ଦାଶ ବେନହୁର**

*ପ୍ରକାଶନ କାଳ :* ୧୯୯୭

ପ୍ରକାଶନ ସଂଖ୍ୟା :
ଏସ୍.ଆର.ସି. ୧୮୬/୧୮/୯୭
ଛାପା ସଂଖ୍ୟା : ଦୁଇ ହଜାର

*ପ୍ରକାଶକ :*
ଡକ୍ଟର ବିମଳେନ୍ଦୁ ମହାନ୍ତି
**ନିର୍ଦ୍ଦେଶକ, ରାଜ୍ୟ ଜନସଂଖ୍ୟା**
**ସାଧନ କେନ୍ଦ୍ର, ଓଡ଼ିଶା,**
ଭୁବନେଶ୍ୱର - ୭୫୧ ୦୦୧

ମୁଦ୍ରାକର :
***ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା***
***ଦ୍ୱାରା ନିସ୍ୱାସ ପ୍ରେସ୍, ଭୁବନେଶ୍ୱରରେ ମୁଦ୍ରିତ ।***

**ମୂଲ୍ୟ : ପାଞ୍ଚଟଙ୍କା ମାତ୍ର**

**KATHA DHADIE KU BHABA GADIE**

*Compiled by :*

**DASH BENHUR**

**1st Edition : 1997**

Publication No : SRC-186-18/97
Copies Printed : 2,000

*Published by :*

**Dr. B. Mohanty**
Director
State Resource Centre for
Adult Education, Orissa,
Bhubaneswar - 751 001

Printed through :

***Orissa State Bureau of Text Book Preparation and Production at NISWASS Press, Bhubaneswar.***

**Price : Rs. 5.00**

*Digitized by srujanika@gmail.com*

୧

ଅଖାଈ ନାନୀ
ପାନ ପତରି
ବସିଥାଏ ବାରିପଟେ,
ମିଣିପ ଦେଖିଲେ
ସକେଇ କହେ
କିଛି ପଡ଼ିନାଇଁ ପେଟେ ।

୨

ଅଖାଇ ବୋଲିକି ଜଣା
ସିଲୁପାଟାକର
ଗୁଂଡା ବଳୁଥାଏ
ନାଇଥାଏ ନାକଚଣା ।

୩

ଅଗାଂ, ବଗା, ଖଗା
ତିନିହେଁ ତିନି ଅଲଗା ।

୪

ଅଜା ଗଜା, ବୁଢ଼ା ମେଷ
ଦୁଧର ଉପର ଦହିର ଶେଷ
ମାଛର ମା, ଶାଗର ଝି
ଏୟାକୁ ନଖାଇ
ଖାଇବ କି ?



୫

ଅତି ନୋହିବ ଡେଂଗା ସରସର
ଅତି ନୋହିବ ବାଂଗର,
ଅତି ନୋହିବ ତେଲ ସରସର
ଅତି ନୋହିବ ମାଖର ।

୬

ଅତି ଭକତିରେ ବାଇ
ଚିତା ଚଇତନ
କହିବା କିସ
ପୂଜା ନସରୁଣୁ ଖାଇ ।



Digitized by srujanika@gmail.com

୭

ଅତି ସୁଆଦ ପୋକ ଖାଏ,
ଅତି ସୁଂଦର ଲେସେଡ଼ି ଯାଏ ।



୮

ଅଦାରେ ପୁଅର ବେପାର,
ନଉଚି ଜାହାଜ ଖବର ।

୯

ଅଦିନେ ଖାଇଚି ଦହି,
ଗାଁଯାକ ଗଲି କହି ।

୧୦

ଅଧେ ଆପଣା
ଅଧେ ପର,
ତେବେ ତୁ କରିବୁ
ସଂସାରେ ଘର ।

୧୧

ଅନଳ ନଳ
ଓଦା ଶୁଖିଲା
ସବୁ ଜାଳ ।

୧୨

ଅବାଣି କଟାଏ ଝୋଟ,
ଠାଏ ସରୁ ଠାଏ ମୋଟ ।



Digitized by srujanika@gmail.com

୧୩

ଅଭିଆଣରେ
ଭିଆଣ ଦେଖ,
ପେଯପିଆ ଠେଇଁ
ବାଜୁଚି ଶଂଖ ।



୧୬

ଅଲାଉ ଲାଉ
ଟେକି ଟାକି ଦେଲେ
ବୁଲିକି ଯାଉ ।

୧୪

ଅଳପ ସଳପ ଲୋକର ବୋଝ
ତାକୁଇ ଜାଣିବ କପା;
ମହରଗ କାଳେ ଯାଚିଯେ ଖୁଆଏ
ତାକୁଇ କହିବ ଅପା ।



୧୭

ଅଶୋକା ନାରୀ
ଯେଣେ ଯାଏ,
ମନ ଫୁଲାଣିଆ
ଗୀତ ଗାଏ ।

୧୫

ଅଳସେଇକୁ ପୁଅ ଗୀତି,
ଦୋଳିରେ ବସେଇ ଗାଏ ଗୀତି ।

୧୮

ଅଂଧାର ଘରେ
କାଣୀ ଚମକେ,
ଯାହା ପାଉଥାଏ
ଅଂଟିରେ ଜାକେ ।



Digitized by srujanika@gmail.com

୧୯

ଅଜଟ ନଥିଲେ
ଆପଣେ ମରି,
କୁଳ କୁଟୁଂବକୁ
ହାଟେ ଘୋଷାରି ।

୨୨

ଆତୁରକାଳେ
ଯାଚଂତି କୁକୁଡ଼ା,
କାମ ସରିଗଲେ
ଦିଅଂତି ଲେଫେଡ଼ା ।



୨୦

ଆକାଶ କଇଁଆ
ଚିଲିକା ମାଛ,
କେତେ ପାଁଚୁଥାଉ
ଅପାଁଚ ପାଁଚ ।

୨୩

ଅଦର ନଥାଇ ଯେଉଁ ଭୋଜନ,
ଲବଣ ନଥାଇ ଯେଉଁ ତିଅଣ,
ମାଲପା ନଥାଇ ଯେଉଁ ଗାଧୁଆ,
ବଡ଼ ବିତିବିତା ବଡ଼ ଅଡୁଆ ।

୨୧

ଅଗକୁହା, ଅଗବୋଲା
ପରଗାଈ ଦୁହାଁ
ବଡି ପେଲା ।

୨୪

ଆଦାୟ ଦେଖି
ଖରଚ କର,
ଶରୀର ଦେଖି
ଧରମ କର ।

Digitized by srujanika@gmail.com

୨୫

ଆପରୁଚି ଖାଇବ,
ପରରୁଚି ନାଇବ ।

୨୬

ଆପେ ମଲେ
ଯୁଗବୁଡୁ
ପରମଲେ
ପାଣିବୁଡୁ ।

୨୭

ଆମ ମିତଣୀକୁ କହିବ,
ସବୁଦିନେ ରଂଗ ରହିବ ନାହିଁ
ଗଛ ଦିନେ ବୁଢ଼ା ହୋଇବ ।

୨୮

ଆଳକୁଚି ଖା
ମାଳୁକୁଚି ଖା
ଭାତ ପରି କିଏ ହୋଇବ ?
ମାଉସୀ ବୋଲ
ପିଉସୀ ବୋଲ
ମା' ପରି କିଏ ହୋଇବ ?

୨୯

ଆଲୋ ମଉସା
ଜଡ଼ ପଇସା
ବାକୀ ଯେତେ କଥା
ଫସରଫସା ।

୩୦

ଆଲୋ ମୁକୁତା
ଗୁରୁବାର ଦିନ
ହେଲୁ ପୋଖତା ।
ଦୁଧରୁ ଖାଇଲୁ ସର,
ପୁଅ ନାଆଁ ଦେଲୁ
ଚକରଧର
ହସୁଥିଲା କର କର ।



Digitized by srujanika@gmail.com

୩୧

ଆସୁଥିଲା କଥା
ବାହୁଡ଼ି ଗଲା
ଦେଢ଼ଶୁର ଆଇ
ଅଡୁଆ କଲା ।

୩୨

ଆୟୁଥିଲେ
ମାରିବ କିଏ,
ଆୟୁ ନଥିଲେ
ରଖିବ କିଏ ?

୩୩

ଆଁବ ପତର ମୋଡ଼ି ମୋଡ଼ିକା
ପଣସ ପତର କାହାଳୀ,
ଭିତରେ ଭିତରେ କାବତା ବସା
ଯା ଫଡ଼ ଫଡ଼ ବାହାରି ।

୩୪

ଆଁବିଳି ଜାଉକୁ
ନମିଳେ ଲୁଣ,
ଦାଂତରେ ବଖାଣେ
ତିନି ତିଅଣ ।

୩୫

ଆଁବୁଲ ମାଠିଆ
ଯେଉଁଠି,
ବୁଢ଼ା ଗଡ଼ି ଗଡ଼ି ଯାଇ ସେଇଠି ।

୩୬

ଇତର କଥାରେ
ଭିତର ଜଳେ,
ନିଆଁ ନାଗିଯାଏ
ବତର ଗ୍ଭଳେ ।



Digitized by srujanika@gmail.com

୩୭

ଈଶାଣ କଣରେ ବସି,
'ଅଂଟିରେ ଜାକିଚି
ଶୁଖୁଆ ପୋଡ଼ା
ଦଉଚି ମୁରୁକି ହସି ।

୪୦

ଉଭା ତାଳ, ପୋତା ଶାଳ
ରୁଅ ହେଁତାଳ, ଗଂଠି ବେତାଳ
ଘରଣୀ ଚେତାଳ
ସେଘର ଯାଏ ଅପାର କାଳ ।



୩୮

ଉକୁଣୀ ସକାଶେ
ବାଳ ପକାଇଲି
ସଭିଏଁ କହଂତି ନାଂଡ଼ି,
ଛମାସ ହେଲାଣି
ଆଇଁଷ ଛାଡ଼ିଲି
ସଇଲା ଶୁଖୁଆ ହାଂଡ଼ି ।

୪୧

ଉଂଚ୍ଛେଇଥିବ
ମାରିବ ନାହିଁ,
ଗୋଡ଼େଇଥିବ
ଧରିବ ନାହିଁ ।

୩୯

ଉଣା ଲୋକ ପଦପାଏ,
ହଜିଗଲେ ଗୀତଗାଏ ।

୪୨

ଏକ ପା ନଖାଏ ଭୋଗୀ
ଦୁଇ ପା ନଖାଏ ରୋଗୀ
ତିନି ପା ନଖାଏ
ମୂଲିଆ ବାପୁଡ଼ା
ଚ୍ଚରି ପା ନଖାଏ ଯୋଗୀ ।



Digitized by srujanika@gmail.com

୪୩

ଏକ ଲେଖା,
ଶହେ ଭାଖା ।

୪୪

ଏତେ ଖାଇ ଖାଇ
ନପୂରେ ପେଟ,
ବିରି ଓଳିଆରେ
ମାରଇ ହାତ ।

୪୫

ଏବଣ ପାଠୁଆ
ଶାରୀଶୁଆ,
ବିଲେଇ ଦେଖିଲେ
ଅଚ୍ଛାବୁଆ ।



୪୬

ଏହି ବୀଜରୁ
ଏହି ତରୁ,
ହସି କହିଲେ
ରାଜା କୁରୁ ।

୪୭

କଅଁଳ କାକୁଡ଼ି
ବହଳ ଚୋପା
କାଟିଦେଲି ପରବାକୁ,
ଅଳପ ଦିନକୁ
ବହୁତ କଥା –
ଝୁରି ଝୁରି ମରିବାକୁ ।

୪୮

କଖାରୁ ଚୋର,
ଲାଉ ଚୋର,
ଚୋରୋଉ ଚୋରୋଉ
ବଡ଼ ଚୋର ।



Digitized by srujanika@gmail.com

୪୯

କଡ଼ାକେ ତରି,
କଡ଼ାକେ ମରି,
କଡାକେ ଘର ସଂସାର କରି ।

୫୨

କର୍ପୂର ଗଲାଣି ଉଡ଼ି
କନାଟା ରହିଚି ପଡ଼ି ।

୫୦

କଦଳୀ, ବାଉଁଶ, କିଆ
ଏ ତିନିରୁ ନାଇଁ ପରଖିଆ ।

୫୩

କବାଟ କଣରେ ନେଉଳ,
କାନ ଫୁସୁଫୁସୁ
ଗୁପତ କଥା
ମତେ କହିଯାଅ ବଉଳ ।

୫୧

କଦଳୀ ମଂଜା ହେଲେ ସାର
ଭଂଡାକୁ କଲେ
ଘରୁ ବାହାର ।

୫୪

କରମ ଗୁଣେ କରମଂଗା ଫଳେ,
ଲାଉ ଲଗେଇଲେ ଚଲଣା ମିଳେ ।



Digitized by srujanika@gmail.com

୫୫

ଜରଂତି ଥଂଗେ
ଅନେକ ଛାପ,
କେହି ନଜାଣେ
ଭିତର ପାପ ।

୫୮

କାଣୀ ହେବାଠାରୁ ଦୁଃଖ ନାହିଁ,
ରାଣୀ ହେବାଠାରୁ ସୁଖ ନାହିଁ ।



୫୬

ଜହ୍ନୁ ଯେତେ
ନୋହ୍ନୁ ଯେତେ ।

୫୯

କାନ୍ଧରେ ପଡ଼ିବ ଯେବେ,
ବଜାଇ ଶିଖିବ ତେବେ ।

୫୭

ଜାଁ କରମକୁ ଘିଅ ସାକର
ଜାଁ କରମକୁ ଲଡ୍ଡୁ
ଜାଁ କରମକୁ ଖାରିଆ ଖଡ଼ା
ଝ୍ୱେବେଇ ଗ୍ୱେବେଇ ମରୁ ।

୬୦

କିଏ ସାତ କିଏ ସତର,
କିଏ ନିଦା କିଏ ପଥର ?

Digitized by srujanika@gmail.com

୬୧

କୁଳ ବୁଡ଼ିବାର
ଏମଂତ ରୀତି,
ଅଜା ଥାଉଁଥାଉଁ
ମରଇ ନାତି ।



୬୪

ଖିଡୁ ଭଲକରି ମାଜ
ଟାଡ଼ ଭଲକରି ମାଜ,
ରଜା ଜାଣିଲେ ପରଜା ଜାଣିଲେ
ଆଉ କାହିଁପାଇଁ ଲାଜ ?



୬୨

କୂଅକୁ ଝର
ଦୁଧକୁ ସର ।

୬୫

ଖରା ସହେ ମେରୁ,
ଖରା ସହେ ତରୁ,
ଖରା ସହେ ଖଟିଖିଆ
ଖରା ସହେ ଗୋରୁ ।



୬୩

କେତେ ଦିନକୁ
କେତେ କଥା,
ଅବର ଘରକୁ
ଗବର ବତା ।

୬୬

ଖଲିଆ ବୋଲେ 'ପାଟଳିଆକୁ
ଦେଏଖେ ମୋର ଗ୍ୱଲି,
ତୁ' ମୁଁ ଦୁହେଁ ଘଣି ହୋଇଲେ
ଗୋସେଇଁ ଖାଇବା କାଲି ।



Digitized by srujanika@gmail.com

୬୭

ଖାଇ ନଜାଣି
ଭାତର ଦୋଷ,
ଦେଇ ନଜାଣି
ପତର ଦୋଷ ।

୭୦

ଖଂଡି ଗୁଣିଆର ଦ୍ୱିଗୁଣ ସରେ,
ଆଟିକା ଚୁହାଁର ମାଇପ ମରେ ।

୬୮

ଖାଇବ ସଅଳ,
ଶୋଇବ ଆଗ,
ଉଠିବ ସକାଳେ
ପ୍ରଳିବ ବେଗ ।

୭୧

ଗଛ ଚଢ଼ି ନଜାଣେ ଯେ,
କୁଆ ଅଇଁଠା ଖାଏ ସେ ।

୭୨

ଗଛର ଛାଇ
ମଣିଷ ହାଇ,
ଯହିଁ ପଡ଼େ ତହିଁ
ଉଧାଏ ନାହିଁ ।

୬୯

ଖାଇବାକୁ ଦେଲେ ବେଳେ,
ନାଆଁ ରହିଥିବ କାଳେ କାଳେ ।



Digitized by srujanika@gmail.com

୭୩

ଗବଗଛ ତିନିକେନା
ତୋ ଭାଇ ମାରିଲେ
ମୋ' ଭାଇ ମାରିବ
ପାଲଟ କନିଆଁ ସିନା ।

୭୬

ଗାଆଁ ବାହାରେ ଘର,
ସ୍ୱେର, ନିଆଁକୁ ଡର ।



୭୪

ଗରମ ପାଣିରେ
ଘର ପୋଡ଼େ ନାହିଁ,
ମଣିଷ ଗାଳିରେ
ମଣିଷ ମରେ ନାହିଁ ।

୭୭

ଗାଇବୁ ଗୀତା
ଖାଇବୁ ପିତା
ତେବେଟୁ ହୋଇବୁ
ଜଗତ ଜିତା ।

୭୫

ଗାଆଁ ପରିମଳ ଧୋବା ତୁଠରୁ,
ବନ୍ଧୁ ପରିମଳ ଅଧା ବାଟରୁ ।

୭୮

ଗାଈ ନବୋଲେ
ଗୋସେଇଁ ବୋଲି,
ଗୋସେଇଁ ଧାଇଁଛି
ଦୋହଣୀ ଧରି ।



Digitized by srujanika@gmail.com

୭୯

ଗାଧୋଇ ଯିବାକୁ
ଅଳସ ଲାଗଇ
କାଖ କରି ମତେ ନିଅ
ପଥର ପାଉଛେ
ବସାଇ ଦେଇଣ
ପାଣି ଗୃରିଯୋଡ଼ା ଦିଅ ।

୮୦

ଗୁଆ ଟାଣ ପାନ
ଚୁଆ ଟାଣ ଧାନ ।

୮୧

ଗୁଣକୁ ପୂଜା,
ଅବିଗୁଣ ହେଲେ
ବାଇଦ ବଜା ।



୮୨

ଗୁଣକୁ ପୂଜା,
ପଖାଳ ଭାତକୁ
କଳରା ଭଜା ।

୮୩

ଗୁଣମଣି
ଗୁଣସାଗର
ଗୁଣ ରଖିଗଲ
ଅଖା ଭିତର ।

୮୪

ଗୁପତ ଦାନର ଗୁଣ ବେଶୀ
ଗୁପତ ପାପର ଖୁଣ ବେଶୀ ।



Digitized by srujanika@gmail.com

୮୫

ଗୋଟାଏ ମାଘରେ ଶୀତ ଯାଏନା,
ଗୋଟାଏ ହାତରେ ତାଳି ବାଜେନା ।

୮୮

ଘର ଦେଖ ବର ଦେଖ
କାଂଥ ଭାଂଗି କୁଜ ଦେଖ ।



୮୬

ଗୋଡ଼ ଖସିଲେ ଜଣେ ମରେ
ତୁଂଡ ଖସିଲେ ବଉଁଶ ମରେ ।

୮୯

ଘରମାଠ, ଘରଣୀ ମାଠ
ତିନି ବରଷରେ ପିଂଧଇ ପାଟ ।



୮୭

ଘରକୁ ସୁଂଦର ଘରଣୀ
ନଈକୁ ସୁଂଦର ତରଣୀ ।

୯୦

ଘରର ପଛକେ କେହି ନୁହେଁ
ପିଢ଼ାରେ କୁଆ ବସେଇ ନଦିଏ ।



Digitized by srujanika@gmail.com

୯୧

ଘଷର ଘଷର ପାଣି,
ତୁମେ ଯହିଁପାଇଁ
ଲସର ପସର,
ଆମେ ସେହିକଥା ଜାଣି ।

୯୪

ଘରେ ନାହିଁ ଲେଂବୁ ଲୁଣ,
ସଭାରେ ବଖାଣେ ତିନି ତୁଣ ।



୯୨

ଘରେ ଛନ ଛନ
ବାହାରେ ମନ,
କେମିତି ଦେଖିବି
କଳା ବଦନ ।

୯୫

ଘାଇ ମୁହଁରେ ଯାଉଚି, ନା
ବାଲିକଣା ଦେଇ ବୁଜୁଚି ।

୯୩

ଘରେ ନାହିଁ ଖିଡ଼ା
ଆଡ଼ା ଦେଖଉଚି
ଡିଗଂଡା ଡିକଡ଼ା ।

୯୬

ଚଇତ
ଶୀତ ଖାଇଯାଏ ବୋଇତ ।



Digitized by srujanika@gmail.com

୯୭

ଚକୁଳି ପିଠା,
ଯୁଆଡୁ ଖାଇବ
ସିଆଡୁ ମିଠା ।



୯୮

ଚଣା ବେଳକୁ ଦାଂତ ନାହିଁ,
ଦାଂତ ବେଳକୁ ଚଣା ନାହିଁ ।

୯୯

ଚାଉଳ ଡୋଲିକ ଓଳିଏ କଲି
ପାଂଚ କୁଣିଆଂକ ପାଇଁ
ଯେତେକ ଖାଇଲି ଲୁଚାଇ ଚୋରାଇ
ଦିହରେ ଲାଗିଲା ନାହିଁ ।

୧୦୦

ଚାଟଘର ପୁଅ ଚାଟ
ଭାଟଘର ପୁଅ ଭାଟ ।

୧୦୧

ଚୋର ନେଲେ କିଛି ଯାଏ,
ଘର ପୋଡ଼ିଲେ ସବୁ ଯାଏ ।

୧୦୨

ଛନକଛଟା
ତିନିବେଳ ତାର ଖଦି ପାଲଟା
ମାଉସୀ ଦୁଆରେ ଥାଏ,
ନାକଟି ଅଗରେ
କୁଟାଇ ଚିଟା
ଅଘଷା ପାଟିରେ ଖାଏ ।



Digitized by srujanika@gmail.com

୧୦୩

ଛାଇକି ଛତା,
ପାଣିକି ଯୋତା ।

୧୦୬

ଜନମ, ମରଣ, ବରଷା,
କହି ନପାରଇ ପୁରୁଷ।



୧୦୪

ଜଗତି ଉପରେ ବସିଲେ କୁଆ
ଗରୁଡ଼ ବୋଲିକି ହୋଇବ କୁହା ?

୧୦୭

ଜାଣିଥିଲିକି,
ଅଧେ ସୁନା ଅଧେ ପିତଳ ବୋଲି ମୁଁ
ନିକିତି ପକେଇ
ତୁଳି ଥିଲିକି ?

୧୦୫

ଜଗିଥିବ ଭଗିଆ,
ମାରିନବ ଭୋଗିଆ ।

୧୦୮

ଜାହାଜୀ ଗୁଆ ସାଥିରେ ହରିଡ଼ା,
ଅଖାହେବ ବନାରସୀ କପଡ଼ା,
ଯୂଇ ସଂଗତରେ ମାଧବୀ ଫୁଲ,
ସମକଲେ କି ହେବ ସମତୁଲ ।



Digitized by srujanika@gmail.com

୧୦୯

ଜୋର ଯାର
ମୁଲକ ତାର ।

୧୧୦

ଝାଡ଼ିବ ଯେତେ
ଝଡ଼ିବ ସେତେ ।

୧୧୧

ଛିଅଛିଁଆଣୀ,
ଦବାନବା ଯାଏଁ
ମୁହଁ ଗ୍ରହାଣୀ ।



୧୧୨

ଟାଣ କରୁଥାଏ
ମାଇପ ଆଗେ,
ପୁଲିସି ଦେଖିଲେ
ଘରକୁ ଭାଗେ ।

୧୧୩

ଟଂକାକ ପଛକେ
ବାରଣା ହଉ,
ଯାଇ ଆସି ପୁଅ
ସିଆଣା ହେଉ ।

୧୧୪

ଠେକିର ତେଲ ଠେକିରେ ଥାଉ,
ପୁଅର ବାଳ ନୁଖୁରା ନୋହୁ ।



Digitized by srujanika@gmail.com

୧୧୫

ଠେକୁଆ ଧାଇଁ ଧାଇଁ ଯେତିକି,
କଇଁଛ ଗ୍ଳି ଗ୍ଳି ସେତିକି ।

୧୧୮

ଢମ କରୁଚ କେତେ
ତମର କଥାକି
ଅଜଣା ମତେ ?



୧୧୬

ଡରୁ ତ କରୁ କାହିଁକି,
କରୁ ତ ଡରୁ କାହିଁକି ?

୧୧୯

ଢମ କରୁଚି,
ଛଅଟା ଧାନରେ
ନଅଟା ଚକୁଳି,
ଦିଇ କଲେ ଘିଅ
ବୋହି ଯାଉଚି ।

୧୧୭

ଚେଂଗା ଗଛର
ତୋଫାନ ଡର,
ଦୂବଘାସର
ନାଇଁ ଖାତର ।

୧୨୦

ଢଗ ବାରବୋଡ଼ି ଥିଲାକି ନଥିଲା
ଗୀତ ବାରବୋଡ଼ି ଥିଲାରେ,
ଯୋଉଦିନ ହାତ ଧଇଲି କାଳିଆ
ସବୁତ ପାଶୋର ଗଲାରେ ।



Digitized by srujanika@gmail.com

୧୨୧

ଢୋକେ ପିଇ
ଦଂଡେ ଜିଇ ।



୧୨୪

ତେଲ ତମାଖୁ ମଇଦା,
ଯେତେ ରଗଡ଼ିବ
ସେତେ ଫାଇଦା ।

୧୨୨

ତମ ପସରାକୁ
ସୁଆଁ ଜାଉ,
ଅଂଡିରା କୁକୁଡ଼ା
ଡିମ ଦଉ ।



୧୨୫

ତେଲ ତେଲି ଗଲେ ମିଶି
ପିଡ଼ିଆ ପଡ଼ିଲା ଅଲଗା ଖସି ।

୧୨୩

ତିନି ବରଷରେ
ଧାନ ଅଗାଡ଼ି,
ତିନି ପୁରୁଷରେ
କୁଳ ଅଗାଡ଼ି ।

୧୨୬

ତେଲ ତେଲି ଦୁହେଁ
ହୋଇଲେ ଏକା,
ପିଡ଼ିଆକୁ ନେଇ
ବାହାରେ ପକା ।



Digitized by srujanika@gmail.com

୧୨୭

ତେଲ ମାଖୁ ମାଖୁ ସରେ
ଗୁଡ଼ ଖାଖୁ ଖାଖୁ ସରେ ।

୧୩୦

ଥାଉ ମାନ,
ଯାଉ ଧନ ।



୧୨୮

ତେଲ ଲଗେଇବ
ହାବୁ ହାବୁକା
ଭାତ ଖାଇବା ଆଗ,
ଚିତ୍ ହୋଇ ଶୋଇ ପଡ଼ିବ
ମାରି ନେଇଥିବ ଜାଗା ।

୧୩୧

ଥାଉଁ ନଖାଉ ପେଟକୁ
ଥୋଉବୁ ଯାହା ଖଂଟକୁ ।

୧୨୯

ତେଲ ହଳଦୀ ସାରନା
ପୁଅକୁ ନୁଖୁରା କରନା ।

୧୩୨

ଥିଲାକି ଯୋଗ,
ଭିକାରି ପିଲାକୁ
ରାଜନ ଭୋଗ ।



Digitized by srujanika@gmail.com

୧୩୩

ଥୋଇଛୁ ଯାହା ପର ଲୋକକୁ,
ଦେଇଛୁ ଯାହା ପରଲୋକ କୁ ।

୧୩୬

ଦିନେ ନାଇଁ
କାଲେ ନାଇଁ
ଭୋଜିଭାତ ବେଳେ
ମାଇଁ ମାଇଁ ।



୧୩୪

ଥୋଡ଼େ ନେଇଯାଆ ବାଟକୁ
ଥିଲେ ଲାଗିବ ଘାଟକୁ ।

୧୩୭

ଦୁଧ ଉତୁରିଲେ
ଚୁଲିରେ ପଶେ,
ମଣିଷ ଉତୁରିଲେ
ଗାତରେ ପଶେ ।

୧୩୫

ଦଳ ଛଡ଼ାଇଲା କିଏ,
କଉ ଖାଇଲା କିଏ ?

୧୩୮

ଦେଇଥିଲେ ପାଇ,
ପଡ଼ିଆ ବିଲରେ
ଗୋଧନ ଚରାଇ ।



Digitized by srujanika@gmail.com

୧୩୯

ଦେଇଥିଲେ ପାଇ
ବୁଣିଥିଲେ ଦାଇ ।

୧୪୦

ଦେ' କଉଡ଼ି ଖା' ପିଠା
ଏଥିପାଇଁ କିଆଁ
ଦାଂତ ନିକୁଟା ।

୧୪୧

ଦେ' ପାଟି, ଖା' ପିଠି,
ଝାଡ଼ିଝୁଡ଼ି, ଯା' ଉଠି ।



୧୪୨

ଦୋଳ ପୂନିଅଁକୁ ଫଗୁ
ଯିଏ ଯାଆର
ସିଏ ତାଆର
କହିଲା ଲୋକ ଲଘୁ ।

୧୪୩

ଧୀର ମଂଥର ଗ୍ୱଲିକି
ସରି ନୁହଁଇ
ଘୋଡ଼ା ପାଲିଂକି ।

୧୪୪

ଧୋବା ଘରେ ନାଇଁ
ବାର ବରତ,
ନି'ତି କାଚିଲେ ନି'ତି ଭାତ ।



Digitized by srujanika@gmail.com

୧୪୫

ନଈକି ମାଠିଆ ଗଢ଼ିଗଲା,
ପଲମରୁ ପିଠା ପୋଡ଼ିଗଲା ।
ଦିଅର ଭାଉଜ
କଥା ବ୍ୟରତା
ସାନବୋହୂ କଥା ସରିଗଲା ।

୧୪୮

ନ ଦେଖିଲା ପୁଅ ଦେଖଇରେ,
କଟିମ କାଢ଼ିଚି ବେକରେ ।





୧୪୬

ନଈ ଦିଏ ଥଳ
ବନ୍ଧୁ ଦିଏ ବଳ ।

୧୪୯

ନାମ ବଡ଼ା
ଦରଶନ ଥୋଡ଼ା ।

୧୪୭

ନଈ ଶୁଖିଲେ
କି କରିବ ନାଆ ?
ଥନ ଶୁଖିଲେ
କି କରିବ ମାଆ ?

୧୫୦

ନାଁଟି ମୋର ଘର
ନକର ମତେ ପର ।



Digitized by srujanika@gmail.com

୧୫୧

ନାହିଁକୁ ଉପାୟ ନାହିଁ,
ମଲାକୁ ଔଷଦ ନାହିଁ ।



୧୫୪

ନିଦ ନମାଡ଼େ ରୋଗୀକୁ,
ନିଦ ନମାଡ଼େ ଯୋଗୀକୁ ।

୧୫୨

ନିଜ ଗାଁ ମଶାଣି
ପର ଗାଁ ପାଣି ।



୧୫୫

ନୀଚେ ପାଇଲେ ଅଧିକାର,
ଋଷିଁକୁ ବୁହାଇଲେ ଭାର ।

୧୫୩

ନିତି ମାଗଁତାକୁ
ଦିଅଁତି ନାହିଁ
ନିତି ମଲ୍ଲୁକୁ
ସ୍ତୁହାଁତି ନାହିଁ ।

୧୫୬

ନୂଆନୂଆ ଯେତେ
ବଡ଼ ଆଦର,
ପୁରୁଣା ହୋଇଲେ
ଘଷା ପଥର ।



Digitized by srujanika@gmail.com

୧୫୭

ନୋଳିଥିଲେ ଫଳି ନାଇଁ,
ଫଳିଥିଲେ ନୋଳି ନାଇଁ ।

୧୫୮

ନୋହିଲା ଘରେ
ହୋଇଛି ବଳା,
ଲାହି ବୋଲିକରି
କାଟୁଚି ଗଳା

୧୫୯

ପଇଡ଼ ପାଣିରେ
ପୁଂଜାଏ ମାଛ,
ଆଖିରେ ଦେଖିଲେ
ହୁଅଇ ମିଛ ।



୧୬୦

ପର କରିଦେଲେ ଗଲା,
ପାଣି ବୋହିଗଲେ ଗଲା ।

୧୬୧

ପର ଧନରେ
ଲହର ପହର,
ଛଡ଼େଇ ନେଲେ
ଲାଜରେ ମର ।

୧୬୨

ପରପିଠା
ବଡ଼ ମିଠା ।



Digitized by srujanika@gmail.com

୧୬୩

ପର ପୁଅକୁ ପୁଅକରି ଆଣି
ତାକୁ ନବୋଲିବ ବାଳକ,
ଅତୁଆ ସୂତାରୁ ଖିଅକ ପାଇଲେ
ତାକୁ ନବୋଲିବ ସଳଖ ।
ତୋରାଣି ବେଳାରେ ମୁଠାଏ ପଡ଼ିଲେ
ତାକୁ ନବୋଲିବ ବେଳକ,
ଟୋପିଟୋପି ହୋଇ ମେଘ ବରଷିଲେ
ତାକୁ ନବୋଲିବ ପାଳକ ।



୧୬୬

ପାଠକୁ ରସେ,
ନପଢ଼ି ନଶୁଣି
ଚୁଲରେ ଖୋସେ ।

୧୬୪

ପରପୁଅ ମଲା ନା,
ରୋଗ ବାହାରେ ବାହାରେ ଗଲା ।



୧୬୭

ପାଣି ପିଇବ ଛାଣି,
ପଇସା ନବ ଗଣି ।

୧୬୫

ପାଇକ ହୋଇ
ଚ଼ରଣ ଫାଟୁଆ,
ବଳଦ ହୋଇ
ଚୁଲଇ ମଠୁଆ ।

୧୬୮

ପିଉସା ହେଉ
ମଉସା ହେଉ
ବାପଠାରୁ
ନୁହଁତି କେଉ ।



Digitized by srujanika@gmail.com

୧୬୯

ପୁଷେ ଖଇ,
ମାଘେ ଦହି,
ଚଇତେ
ନିମ ଚକୁଳି ଖାଇ ।

୧୭୦

ପେଟପାଇଁ ନାଚ
ସଉଦା ପାଇଁ ହାଟ ।

୧୭୧

ପୋଡ଼ା ଘା'ରେ ଚୂନ
କଟା ଘା'ରେ ଲୁଣ ।



୧୭୨

ପୋଡ଼ା, ପୋତା, ପକା
ଏ ତିନିଟା ଏକା ।

୧୭୩

ଫଳ ଘେନି ଗଛ ନମଇ ପୁଣ ?
ଗୁଣୀ ହେବ ଯେବେ
ଶିଖ ତା' ଗୁଣ ।

୧୭୪

ଫାଟୁଆ ବାଟୁଆ
ଜନମ ଛୋଟା,
ଚାଲିଲେ ବାଟ
ଦେଖ ହଟହଟା ।



Digitized by srujanika@gmail.com

୧୭୫

ଫାଟେ ତୁଟେ,
ଧୋବା ପୁଅର
ଯାଉଛି କେତେ ?

୧୭୮

ବଇଦ, ପଇଡ଼, ମଦଘଡ଼ା
କାମ ସରିଲେ ଗଡ଼ଗଡ଼ା ।



୧୭୬

ଫୁଲ ହୋଇ ଯେବେ ନଥାଏ ବାସ,
ଫୁଲାଣିଆ ଯେବେ ହୁଏ ନରେଶ,
ବେଉସା କରିଯେ କରିବ ହେଳା,
କହଇ ଦନାଇ ବୁଡ଼ିବ ଭେଳା ।

୧୭୯

ବଡ଼ଘର ବୋଲି ନାଆଁ ପଡୁଛି,
ଅଢ଼େଇ କୁଲାର ଶାଗ ସିଝୁଛି ।



୧୭୭

ବଅଁଶ ବୁଡ଼ିବା ନୀତି,
ଗୋସେଇଁ ଆଉଣୁ
ମରଇ ନାତି ।

୧୮୦

ବଡ଼ ବଡ଼ ଗଲେ ଫସର ଫାଟି,
ସାନ ଆସିଗଲେ ବେସର ବାଟି ।



Digitized by srujanika@gmail.com

୧୮୧

ବଡ଼ବଡ଼ିଆ ଗଲେଣି ହଟି,
ସାନ ବାହାରିଚି ବେସର ବାଟି ।

୧୮୪

ବନ ଦୂରୁଗାକୁ ବନ ମାଳତୀ
ଦୀପ ଧୂପନାଇଁ ତୁଛା ଆଳତି ।



୧୮୨

ବଣରେ ବେଇଚି ପୁଅ ଯିଏ,
ଡାହାଣୀକି କିଆଁ ଡରିବ ସିଏ ?

୧୮୫

ବୟସ ବଢୁଚି ଯେତେ,
ଆୟୁଷ ଛିଡୁଚି ତେତେ ।

୧୮୬

ବାଆ ମୁଠାକଲି ବାଆ ମୁଠାକଲି
ବାଆକି ମୁଠାରେ ରହିବ,
ସାତଥର କରି ବୁଝାଇ କହିଲେ
ପରକି ଆପଣା ହୋଇବ ?

୧୮୩

ବଥ ଫାଟିଲା
ବଥା ହଟିଲା ।



Digitized by srujanika@gmail.com

୧୮୭

ବାଉଁଶ ଫୁଲିଲେ ମରେ
ମଣିଷ ବୁଲିଲେ ମରେ ।

୧୯୦

ବାପ ମରିଗଲେ
ପିଉସୀ ଥିବ,
ମାଆ ମରିଗଲେ
ମାଉସୀ ଥିବ ।

୧୮୮

ବାଡ଼ ହୋଇ ଯେବେ ଖାଏ ବେଉସା,
ବିରାଡ଼ି ହୋଇ ଯଦି ନମାରେ ମୂଷା,
ରଜା ହୋଇ ଯଦି ଡ଼ଂଡଇ ଚଷା
କହ କି ହୁଏ ସେ ଦେଶର ଦଶା ?

୧୯୧

ବାର ବରଷର ମଉଳା ପୋଷେ,
ଖୁଡୁତା ଦେଖିଲେ କୋଳରେ ବସେ ।

୧୮୯

ବାପଜାଣି ପୁଅ,
ମାଆ ଜାଣି ଝୁଅ ।

୧୯୨

ବାହାପିଆର ରୀତି
ବାହାରେ କହଇ ·
ଡମ ବାରବୋଡ଼ି
ଘରେ ନଜଳଇ ବତୀ ।



Digitized by srujanika@gmail.com

୧୯୩

ବାଧ ମସୁଣୀ ଗୁଳରେ,
ଦୁଇ ପରାଣିଆ ଭଲରେ ।

୧୯୪

ବିରିମାଢ଼ ଦେଖି
କୋଳଥ ଗ୍ରେପା,
ବରଗୁଡ଼ି ବୋଲେ
ମଲିଲୋ ବୋପା ।



୧୯୫

ବିଲରେ ଫୁଟିଲା କଇଁ,
ବାପଘର ଛାଡ଼ି
ଗଲେଣି ମାଇଁଲୋ
ବେଙ୍ଗରଡ଼େ ରାଇଁଝାଇଁ ।

୧୯୬

ବିଲେଇ ଅଣପୁରୁଷା ଦେଖି,
ମୂଷା କରମ କରୁଚି ବସି ।

୧୯୭

ବୁଢ଼ା ବଡ଼ କୁରୁପଣ,
ପଖାଳ ଭାତରେ
ନଖାଏ ଲୁଣ ।



୧୯୮

ବେଶୀ ନଖାଇବ ବାଟେ,
ଗାଧୋଇ ବସିବ ତୁଠେ,
କଳି ନକରିବ ହାଟେ,
ଶୟନ କରିବ ଖଟେ ।



Digitized by srujanika@gmail.com

୧୯୯

ବେକୁବ ନଂବର ଏକ,
ରାଜାର ସଂଗରେ କରୁଚି ଟେକ ।

୨୦୨

ଭଲଭଲ ଲୋକ ଘ୍ରେରୀ କରଂତି,
ରଂକୁଣୀ ଦେଖିଲେ ମାରି ଗୋଡାଂତି ।



୨୦୦

ବେଂଗ ବଢ଼ାବଢ଼ି ପାଣି ଦେ,
ଗଡ଼ିଆ ପୋଖରୀ ଭରେଇ ଦେ ।

୨୦୩

ଭାଜିଲା ଯୁଆଳି ଛିଡ଼ିଲା ଯୋତ,
ଝିଅ ମଲେ ଜୋଇଁ କାହିଁରେ ଗୋତ ।

୨୦୧

ଭଲତ ଭଲ ମୋ କଲରା କଷି,
କଲରା ଥିଲେ ତିଉଣ ଅଛି ।

୨୦୪

ଭାତ ମୁଠେ ଖାଏ,'
ଭାଟ ପରି ଗାଏ ।



Digitized by srujanika@gmail.com

୨୦୫
ଭିନେ ହେଇଥିଲା ଭାଇ
ପଡ଼ିଶା ପଣକୁ ଯୋଗା ନୁହଇ ।

୨୦୮
ମଠ ଗୃକିରିଆ ହୋଇବ,
ଭୋକ ଆତୁରିଆ ନୋହିବ ।



୨୦୬
ଭୋଜି ହୋଇଥିଲା ବରଷେ,
ଘୋଷି ହେଉଥାଉ ପୁରୁଷେ ।

୨୦୯
ମଦକୁ ଲୋଭ
ଧୁଆଁରେ ଭାବ
କରଜ କରିଯେ ଖାଏ,
ଯମଘର କଥା
ପଛକୁ ଥାଉ
ନିତି ମରୁଥାଏ ସିଏ ।



୨୦୭
ଭୋଦୁଅ ମାସର ଖରାଗୋ
ମାଆ ଭଉଣୀ ଶୁଣ,
ଘାଇଲା ମେଘକୁ
ମାଟି ଦଲଦଲ
କି'ଗାଇବି ଶାଶୁ ଗୁଣଗୋ ।
ମାଆ ଭଉଣୀ ଶୁଣ ।(୧)
ଶାଶୁ ମୋର ବଡ ଖରଗୋ
ମାଆ ଭଉଣୀ ଶୁଣ
କଥା କହୁଥିଲେ
ଗୃଳ ଦୁଲୁକଇ
କଂସାଗିନା ଝଣ ଝଣଗୋ
ମାଆ ଭଉଣୀ ଶୁଣ ।(୨)

୨୧୦
ମନ ଦେଇଛି
ଏଣିକି ତେଣିକି,
ହାତ ପାତିଛି
ଗୁଡ଼ିଆଣୀକି ।



Digitized by srujanika@gmail.com

୨୧୧

ମନ ନଟୁଆ,
ପାନ ଚୂଆ ନାହିଁ,
ଢୁଙ୍ଗି ବଟୁଆ ।



୨୧୪

ମା'ର ଖୁଦ କୁଣ୍ଡା,
ବାପର ସୁନା ମୁଣ୍ଡା ।

୨୧୨

ମା'ର ଝିଅ ମାଉସୀ,
ବାପର ଝିଅ ପିଉସୀ



୨୧୫

ମାରେ ହରି ରଖେ କେ,
ରଖେ ହରି ମାରେ କେ ?



୨୧୩

ମା' କୋଚା କୁଟେ,
ପୁଅ ମୁଣ୍ଡରେ
ଜାଈଫୁଲ ଫୁଟେ ।

୨୧୬

ମୂଳରୁ ନଥେ,
ମୁକୁତୋଉଥେ ।



Digitized by srujanika@gmail.com

୨୧୭

ମୋତେ ଯେତେ ମାଠିବୁ ମାଠ,
ମୁଁ ସେଇ ଦରପୋଡ଼ା କାଠ ।

୨୨୦

ଯାଉଥିବ ଆସୁଥିବ
ନକରିବ ପର,
ଦାଂଡେ ଶୋଇ ହାଡୁଖାଇ
କରିଦେବ ଘର ।

୨୧୮

ଯହିଁ ଗୁଣ
ତହିଁ ଖୁଣ ।

୨୨୧

ଯାଉ ଧନ
ରହୁ ପଣ ।

୨୧୯

ଯହିଁ ଦାନା,
ତହିଁ ଯାନା ।

୨୨୨

ଯାଚି କଇଲାଣ ମାଗି ଓଳିକି
ଏସବୁ ନୁହଁତି କେଉଁ ଭଳିକି ।



Digitized by srujanika@gmail.com

୨୨୩

ଯାତରା ଦେଖା,

କଦଳୀ ବିକା ।

୨୨୬

ଯାହାର ଖାଇ ଲୁଣ,

ତାହାର ଗାଇ ଗୁଣ ।

୨୨୪

ଯାହା ନ ଖାଅଇ ଝିଅ,

ତାହା ଜୁଆଇଁ ପତରେ ଦିଅ ।

୨୨୭

ଯାହାର ଯେଉଁ ଠାଣି

ଚ୍ଳଲିବା ଠାରୁ ଜାଣି ।



୨୨୫

ଯାହା ନଦେଖିବ ଦୁଇ ନୟନେ,

ପରତେ ନଯିବ ଗୁରୁ ବଚନେ ।

୨୨୮

ଯିଏ ଯାହାକୁ ଦେଖି ନପାରେ,

ଉଆଁସ ରାତିରେ ଉକୁଣି ମାରେ



Digitized by srujanika@gmail.com

୨୨୯

ଯେତେ ପୂଜାପୂଜି ଦାମୋଦରକୁ,
ଯେତେ ନଦନଦୀ ସମୁଦରକୁ ।



୨୩୨

ରଂକୁଣୀ ଚେଢ଼ି,
ଲୁଗା ଚିରିଗଲେ
ପିଂଧିବ ଧଢ଼ି ।

୨୩୦

ଯେସାକୁ ତେସା,
ହାରାମଜାଦାକୁ
ଟାଂଗିଆ ପଶା ।



୨୩୩

ଲୁଣ ଖାଉଚି
ଗୁଣ ଗାଉଚି ।

୨୩୧

ରସିକ ପଣକୁ କେଦାର
ଫୁଲ ଶୁଂଘୁଥାଏ ମଂଦାର ।

୨୩୪

ଲୁଣ ଖାଏ ହାଂଡି
ଚିଂତା ଖାଏ ଗଂଡି ।



Digitized by srujanika@gmail.com

୨୩୫

ଲୁହାର ଚୋଟଟକୁ
କମାରର ଚୋଟ ।

୨୩୮

ଶୁଆଶାରୀ କଲେ ଘର,
କାଠିର ନଥର
ସାତ ପୁରିଆଲୋ
ପତର ତହିଁ ଛପର ।



୨୩୬

ଶାଙ୍କୀ ନାଁ ଚଂକରମୁଣା
ଯେ ଅରଛିଲା ସେ ସୁଣା ।

୨୩୯

ଶୁଖିଲା ସାରୁ
ମନ ମରଗଲା
ପଦେ କଥାରୁ ।

୨୩୭

ଶିବା ପଥର ଜଗା କାଠ,
ଆଉ ଦେବତା ମାଠମାଠ ।

୨୪୦

ସପନ କଥାକୁ ସତ ମଣିଥିବୁ
ତାଥାକୁ କରିବୁ ପାଶ,
ସରଗ ତରାକୁ ପଡ଼ିବ ବୋଲିକି
ମନରେ କରିବୁ ଆଶ ।

Digitized by srujanika@gmail.com

୨୪୧

ସର,
ବରଗଛ ମୂଳେ ଘର,
ନପଶିଲା ପୁଅ
ଆସି ପଶିବ,
କାହାକୁ କରିବ ପର ?

୨୪୨

ସହିବା ଗୁଣ ବଡ଼ ଲୋକ,
ଅଳପ ଲୋକ ଭକଭକ ।

୨୪୩

ସାତ ଗଡ଼ଗଡ଼ା ଗୋଇଠା ଖାଇ,
ପୁଣି ବୋଲେମୋ ମରଦ କାଇଁ ?



୨୪୪

ସାନ ଶାଳୀ ସଂଗେ ଟାପରା ଭଲ
କହିଲେ ଯଦି ସହେ,
କାଲି ସଉଦା ଭଲ
ମାଗିଲେ ଯଦି ଦିଏ ।

୨୪୫

ସାପ ହୋଇ କାମୁଡ଼େ,
ଗୁଣିଆ ହୋଇ ଝାଡ଼େ ।

୨୪୬

ସୁଖ ବେଳରେ ସଭିଏଁ ସଖା
ବିପଦ ବେଳେ ନଥାଏ ଦେଖା ।

Digitized by srujanika@gmail.com

୨୪୭

ସୁଗୋରୁକୁ ଡାଂଗେ,
ସୁମଣିଷକୁ ପଦେ ।

୨୫୦

ହଡ଼ାର ବେଦନା
କୁଆ ନଜାଣେ,
ଠକ ଠକ କରି
ଠେଂଗିରେ ହାଣେ ।



୨୪୮

ସଂପଦ ବେଳେ ନୋହିବ ଗ୍ୱତର,
ବିପଦ ବେଳେ ନୋହିବ କାତର ।

୨୫୧

ହରିବୋଲ ଭାଇ ଗୋବିଂଦ ବୋଲ,
ଭାସିଲା ପଥର ବୁଡ଼ିଲା ଶୋଲ ।



୨୪୯

**ହଳଦର ଭଳା ପଡ଼ିଲା,**
**ହାତେ ପଡ଼ି ବାଟେ ଗଡ଼ିଲା ।**

୨୫୨

ହାଇ ଘନଘନ
ମାର କାହିଁକି,
ପରଘର ବୋଲି
ଜାଣ ନାହିଁକି ?

Digitized by srujanika@gmail.com

୨୫୩

ହାଟ ନାଶ କରେ ଝିପିରି ପାଣି,
କୁଳ ନାଶ କରେ ତିନି ଠାଇଁଆଣି ।

୨୫୬

ହାତୀ ବୁଲୁଥାଇ ନିହଲ ହେଇ,
କୁକୁର ଭୁକଇ କାହାର ହୋଇ ।



୨୫୪

ହାତ ନଡ଼ବଡ଼ କହୁଣୀ ଖାଏ,
ଜିଭ ନଡ଼ବଡ଼ ବାଡ଼ିକି ଧାଏଁ ।

୨୫୭

କ୍ଷଣକେ ବାଜା ମହୁରୀ
କ୍ଷଣକେ ପାଳ ଦଉଡ଼ି ।



୨୫୫

ହାତୀ ଗ୍ଭଲେ ବଜାର,
କୁତା ଭୁକେ ହଜାର ।

୨୫୮

କ୍ଷୀର ଅଇଁଠା, ନୀର ଅଇଁଠା
ଆବର ଅଇଁଠା ବେଦ,
ତୁମେ ଯାଇ ତୁମ ଗୁରୁଂକୁ ପଗ୍ଭର
ନ ଅଇଁଠା କେଉଁ ପଦ ।



Digitized by srujanika@gmail.com